# ବାଘମାମୁର ଚିଠି

ଲେଖକ :
ଦୁର୍ଗା ପ୍ରସାଦ ପଟ୍ଟନାୟକ
ପୂର୍ବତନ ଉପ-ସଭାପତି
ଓଡ଼ିଶା ଲଳିତକଳା ଏକାଡେମୀ, ଭୁବନେଶ୍ୱର

ପ୍ରକାଶକ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୭୫୩ ୦୦୨
ପ୍ରଥମ ମୁଦ୍ରଣ ୧୯୯୧
ଦ୍ୱିତୀୟ ମୁଦ୍ରଣ ୧୯୯୫
ମୁଦ୍ରଣ *ଟାଇମ୍ସ ଡ଼ି.ଟି.ପି ସେଣ୍ଟର,* କଟକ
ପ୍ରିଣ୍ଟିଂ *ପଞ୍ଚସଖା ଅଫସେଟ୍,* କଟକ

**BAGHAMAMURA CHITHI**

by
*Durga Prasad Pattanaik*
Ex Vice-President
Orissa Lalitkala Academy
Bhubaneswar

Published by
*Sri Govinda Charana Patra*
Orissa Book Store
Cuttack - 753 002
2nd. Edition 1995

Price : **Rs 10/-**
ISBN 81-7400-099-2

# ବାଘମାମୁର ଚିଠି

ଚିଡ଼ିଆଖାନରୁ
ବାଘର ଚିଠି ଆଣିଚି କାଉ ।
ବିଲୁଆନନା ଡାକିଚି ସଭା
ସଞ୍ଜ ହେଉ
ଯେତେ ଯୁଆଡେ ଥିବେ ପଶୁ
ହେବେ ଏକାଠି ।
ଖୋଲା ହେବ,
ପଢ଼ା ହେବ
କଅଣ ଚିଠି ?



ଚିଠି ଉପରେ ଠିକଣା ଥିଲା,
ଏ ପତ୍ର ପାଇବେ ବିଲୁଆ ରଜା,
ଆଉ ଯିଏ ଥିଲେ ମୋ ପରଜା ।
କାଉ ଗଲା ।
ସବୁ ପଶୁଙ୍କୁ ଖବର ଦେବ,
ଯୋଡ଼ିଝର ହୁଡ଼ା ଉପରେ ସଭା ହେବ ।।
ରାତି ଠିକ୍ ପହରେଠେଇଁ,
ଯିଏ ଯାହାର ପହଞ୍ଚି ଯିବେ
ଖାଇ ପିଇ ।।

ଆଲୁଅ ପାଇଁ ଜୁକୁଜୁକିଆ ନେଲେ ଠିକା ।
ସଙ୍ଗୀତ ପାଇଁ ବେଙ୍ଗଙ୍କ ସଙ୍ଗେ କଥା ପକ୍‌କା ।।



ଖବର ଗଲା ପେଚାକୁ ।
ପଢ଼ିବ ଚିଠି ଆଉ ଲେଖିବ ପାଞ୍ଜି ।
ପଚାରେ ରାଜା ମନ୍ତ୍ରୀକି, ''ଠିକ୍ ସବୁ ?''
ମନ୍ତ୍ରୀ କହିଲା, ''ହଁ ଜୀ'' ।।
ଘଡ଼ି ଘଡ଼ି ବିତି
ଚାରି ଘଡ଼ିରେ ପହରେ ।
ବିଲୁଆ ସବୁ ପ୍ରାର୍ଥନା କଲେ
ହୁକ୍‌କା ହୁକ୍‌କା ହୁଆରେ ।।



ଗୋଟି ଗୋଟି କରି
ଗଡ଼ିଲେ ପ୍ରଜା
ହସ ନାହିଁ କାହା ମୁହଁରେ ॥
କିଟିକିଟିଆ ଅନ୍ଧାର,
ଅମାବାସିଆ ରାତି,
ଆକାଶରେ ଜହ୍ନ ନାହିଁ
ଜଳୁଚି ଯାହା ଜୁଳୁଜୁଳିଆ ବତି ॥



ଚାରିଆଡ଼ ଖାଲି ଶୁନ୍‌ଶାନ୍
ପବନ ବି ଟିକେ
ବହୁନି ।

କୁହୁ କୁହୁ କରି ଗାଉଚି ଝର
ତା ସଙ୍ଗ ତାଳ କେ ଦଉନି ॥



ଆକାଶେ ଅଛି ମେଘ,
ଥଣ୍ଡା ଅଛି ପାଗ ।



ବାଦୁଡ଼ା କେଇଟା ଉଡୁଛନ୍ତି,
ଶିମିଳି ଡାଳରେ ଶାଗୁଣା
ଥାଇ ଥାଇ ଡେଣା ଝାଡୁଛନ୍ତି ॥



ଗାଇବେ ବୋଲି ଗୀତ
ବେଙ୍ଗସବୁ ଆସିଗଲେ ।
ରାଜା ଯେଉଁଠି ବସିବ
ସେଇ ମଞ୍ଚତଳେ ବସିଗଲେ ॥
ଏତିକି ବେଳେ
ଆସିଲା ଠେକୁଆ
ଡେଙ୍ଗ ଡେଙ୍ଗିକା,
କାନ ଦିଟା ଟେକିଥିଲା ।
କେତେବେଳେ ବାହାରିଲେ
କେତେବେଳେ ପହଞ୍ଚିବ
ହିସାବ କରି ଚାଲିଥିଲା ॥
ଭାବିଥିଲା ସବୁଠୁ ଆଗ ସେଇ ହେବ ।
"ସମୟ ଜ୍ଞାନ କାହାରି ନାହିଁ"
ଏକଥା ସଭିଙ୍କୁ କହିଦେବ ॥
ମଜା ମଜା !

ଦେଖିଲା ଆଗରୁ ଆସିଚି ଗଧିଆ
ଆସିଚି ଭାଲୁ ।
ସରିଗଲା ॥ କଅଣ କରିବ ?



ଲମ୍ବାମୁହାଁ ଗଧିଆ ପାଖରେ
ଚୂପକରି ବସିଗଲା ॥
କୋକିଶିଆଳି ଚାଇଁଆ,
ମୁହଁଟାକୁ କରିଥିଲା
ଯେମିତି ଖାଇଚି କଇଁଆ ॥
ଆସିଲା ।

କାଳିଆ ଭାଲୁର
ବାଲୁଆ ଦେହକୁ
ଆଉଜି କରି ବସିଲା ॥



ଗୋଟାଏ ହରିଣ,
ଦେହଟା ତାର ଫୁଟି ଫୁଟିଆ ।

ଆଉରି ଗୋଟାଏ
ଛିଟ ନାହିଁ, ସାଦା,
ତା ଠୁ ଛୋଟିଆ ॥
ଆଉ ଗୋଟାକର ଡାଳିଆ ଶିଂଘ ।
ଆଇଲା ଗୋଟାଏ କସ୍ତୁରୀ ମୃଗ ॥
ଏକାଠେଇ ବସିଗଲେ ।

ସିଏ ଇଆ ମୁହଁ
ଇଏ ତାଆ ମୁହଁ
ଦେଖାଦେଖି ହୋଇ
ହସିଦେଲେ ।।

ଦନ୍ତାବାର୍‌ହାଟାର
ଟାଆଁସ ବାଳ,
ପହଞ୍ଚିଗଲା ।
ଲମ୍ବାଥୋମଣିଟା
ପୋତି ପୋତି
ଥାନ ଖୋଜିଲା ।।



ଚକାମୁହାଁ
ବଣ ଭୁଆଁର
ପାଖରେ ଆସି,
ଦିହରେ ଘଷି
ଚୁପ୍ କରି



ଗଲା ବସି ।।
ଚାଖଣ୍ଡେ ଛୀବ ଝିଙ୍କ,
ରୁମଗୁଡାକ
କଣ୍ଟା କଣ୍ଟା,
ଯିଏ ଦେଖିଲା
ମୁହଁକଲା ଖଟା ଖଟା ।।
ଆସୁ ।
ସଭାକଥା,
ଯୋଉଠି ତାରବସୁ ।।
ସିଂଏ ବସିଲା
ଘସି ହୋଇ



ନେଉଳ ପାଖେ, ନେଉଳ ଖାଲି
ବୁଲୁବୁଲୁକରି ଉଆଡେ ଦେଖେ
ସିଆଡେ ଦେଖେ ।।
ବଢ଼ର କାପତା ,ପକ୍ଷୀ ନୁହେଁ, ଚାରିଗୋଡିଆ ।।
ମାଛପରି ଦିହରେ କାତି । ଭାରି ବଢ଼ିଆ !
ଦିଶେ, ନେଉଳର ଭାଇପରି,
ଲାଗଇ ଯେମିତି କାଠଡିଆରି ।।
ସେ ବସିଗଲା
ଝିଙ୍କ ପାଖରେ ।
ଶୁଙ୍ଘିଂଦେଇ ଟିକେ ମାଟି ସେଠଉ
ଖୋଳି ନଖରେ ।।

ସେଉଠୁ ଆଇଲା ଗୟଳ ।
ମୋଟା,
ଆଉ ବଳୁଆ,
ଚିକିଚିକି କାଳିଆ
ଠିଆ ହେଲା ।
ଯେତେ
ଯେ କହିଲା,
'ବସିପଡ଼'
ମନାକଲା ॥





ଆସିବା ଭିତରେ ଆସି ନଥିଲା ଗଣ୍ଡା,

ନୂଆ ପାଣିରେ ଗାଧୋଇ କରି
ତାକୁ ଧରିଚି ଥଣ୍ଡା ॥
ଛିଙ୍କୁଥିଲା ॥
ତା ମୁଣ୍ଡଶିରା ଗୁଡ଼ା
ଟାଙ୍କୁଥିଲା ॥



ହାତୀ ଆସିଥିଲା ଏଇ ଖବର ଆଣି ।
ଏତେବାଟ ଚାଲି ଶୋଷ ହେଲା,



ଝରଣା ପାଖରେ
ପିଉଚି ପାଣି ।।
ଯିଏ ଯେମିତି ଆସିଗଲେ ।
ବସିଗଲେ,
ଛୋଟ ବଡ ସବୁ ମିଶିଗଲେ ।।

ପାଣି ପିଇସାରି ଆସିଲା ହାତୀ
ଠିଆ ହେଲା ପଛରେ ।
ଜାଣିଥିଲା ସେ
ଆଗରେ ଯଦି ବସିବେ ଡେଙ୍ଗା
ଅଟୁଆହେବ ଟୁଛାରେ ।।

ସଭାପତି ହେଲା ବିଲୁଆ ରଜା,
ଉଞ୍ଚ ଉପରେ ମଞ୍ଚ,
ତା'ରି ଉପ୍‌ରେ ବସିଲା ।
ସମସ୍ତେ ମାରିଲେ ତାଳି ଯେଉଁଠୁ
ମୁରୁକି ମୁରୁକି ହସିଲା ।।
ଗାଇଲେ ବେଙ୍ଗ
ମଙ୍ଗଳ ଗୀତ ।
ଶୁଣିଲେ ସମସ୍ତେ ହୋଇ ଚୁପ୍ ।
ଟିକିଏ ବୋଲି ଶବ୍ଦ ନାହିଁ
ନା ଟାପ୍ ନା ଚୁପ୍ ।।

ଗୀତ ସରିଲାରୁ ସବଦ ହେଲା
କେଁ କାଁ, ଚେଁ ଚାଁ, କାଇଁ କୁଇଁ ।
ବିଲୁଆ ରଜା କଲା ପାଟି,
"ଆଣ ଚିଠି--ଚିଠି କାଇଁ ?"

ମନ୍ତ୍ରୀ କାଢ଼ିଲା ଚିଠି ।
ରାଜା ହାତକୁ ବଢ଼ାଇ ଦେଲା ।।
ଏପଟ ସେପଟ ଦେଖି ଚିଠିକୁ
ରାଜା ତା'ଚୋପା ଛଡ଼ାଇ ଦେଲା ।।





ପେଚାକୁ ଚିଠି ଦିଆଗଲା,
ଅନ୍ଧାରରେ ସେ ପଢ଼ିପାରେ ।
ସମସ୍ତଙ୍କ ଆଗେ ଖୋଲାହେଲା
କାଇଁକି ନା
ମିଛ ବୋଲି କଥା ଉଠିପାରେ ।।

ସମସ୍ତଙ୍କ ଆଖି ପେଚା ଆଡ଼େ ।
କଅଣ ତହିଁରେ ଥାଇପାରେ ।।
ଭଲ କି ମନ୍ଦ
ଲାଭ କି କ୍ଷତି
କିଏ ବା ସେ କଥା କହିପାରେ ?

ପେଚା ।
ବସିଥିଲା ହୋଇ ନୋଚା ।।
ସଳଖି ହେଲା
ଗଳା ଟିକିଏ ସରଳ କଲା,
କଣ୍ଟା ଟିକିଏ ଝାଡ଼ିଲା ।
ଧରିଲା ଚିଠି, ପଢ଼ିଲା ।।



ତାରିଖ...
ଆକାଶରେ ବଡ଼ ଜହ୍ନ ଅଛି ।
ମୁକାମ-ଚିଡ଼ିଆ ଖାନା,
ପିଞ୍ଜରା ନମ୍ବର ଏକଶ ଅଣୀ ॥

ସର୍ବଶ୍ରୀ ବିଲୁଆ, ଗଧିଆ, ବାରହା
କୋକି, ଝିଙ୍କ, ଗୟଳ, ଠେକୁଆ,
ହରିଣ, ନୀଳଗାଈ, ହାତୀ, ଗଣ୍ଡା, ନେଉଳ ॥
ଦନ୍ତାଳୁଆଁ, କଟାଶ, ବଣ କୁକୁର, ଡାହାଳ,
ଶାଳିଆ ପତନି, ବାନର, ନାଲିଆ ମୁହଁ,
କାଳିଆ ମୁହଁ, ଥିବ ଯେମିତି ଯାହାର ॥
ବଗ୍ରକାଗ୍ରା, ଭାଲୁ, ବଡ଼ ଆଉ ଗାଡ଼ ।
ବୁଢ଼ା, ଭେଣ୍ଡା, ଛୋଟ ଆଉ ବଡ଼ ॥




ଯେତେ ଯିଏ ଥିବ ।
ସମସ୍ତେ ସ୍ନେହ ନେବ ॥
ଆଶା କରେ ମୁଁ
ସଭିଙ୍କର ଶରୀର ସୁଖ ଥିବ,
ଖାଇବାକୁ ଆଉ ପିଇବାକୁ
ସଭିଙ୍କୁ ମିଳୁଥିବ ॥



ମୁଁ ବାଘ ।
ଥିଲି ତୁମର ରାଜା ।
ତୁମ ସାଙ୍ଗରେ ରହୁଥିଲି
ତୁମ ସାଙ୍ଗରେ
ଦୁଃଖ ସୁଖ ସବୁ ସହୁଥିଲି
ତୁମରି ଜୀବନ ବଞ୍ଚାଇ କରି
ପେଟପାଇଁ କିଛି ପାଉଥିଲି ॥
ଜଙ୍ଗଲ ଥିଲା ଭରା ଭରା,
ଗଛପତ୍ର ବଢୁଥିଲା ।

ଫଳ ମୂଳ ଯାହାକୁ ଯେତେ
ଖାଇକରି ଫେର୍ ବଳୁଥିଲା ॥
ଗରଜି ମେଘ କଳା ହାଣ୍ଡିଆ
ଘବ ଘବ ପାଣି ଢାଳୁଥିଲା ॥
ହେଉଥିଲା କେତେ ମଜା !
ମୁଁ ଥିଲି ତୁମ ରାଜା ॥
ଅଳସ କରି ଶୋଉ ନଥିଲି,
ଆରାମ କରିବା ଚାହୁଁ ନଥିଲି କି
ସେବା କର ବୋଲି କହୁ ନଥିଲି ॥
ପେଟ ପାଇଁ ସବୁ ଖଟୁଥିଲେଁ
ଭୋକ ହେଲେ ଓଠ ଚାଟୁଥିଲେଁ ।
'ବଳୁଆ ଜିଇବ
ନୁଡୁବୁଡ଼ିଆର ଥାନ ନାହିଁ',
ବଣର ନିୟମ ରଟୁଥିଲେ ।
ବଣରେ ସଭିଙ୍କ ସମାନ ଭାଗ,
କାହାର ଊଣା ନା କାହାର ବେଶି ।
ସେଥିପାଇଁ ଅତି ହୋଇ
କାହାର ବଅଁଶ ବଢୁ ନଥିଲା
କି ଛିଡୁ ନଥିଲା,
ଯେମିତି ନିକିତିରେ କିଏ ତଉଲେ ବସି ॥
ମଣିଷର ରଜା ଗର୍ବ କରୁଥିଲା ମନେ ମନେ
ଆମେ ରହିଚୁ ତା ବଣେ ।
କହୁଥିଲା-''ବାଘ ନଥିଲେ କି ବଣ ସିଏ ?''
ବେଳେ ବେଳେ କେବେ
ଆସି ଶିକାରକୁ
ଆମକୁ ମାରି ସେ ଯଶ ନିଏ ॥

ବଣୁଆଁ ଆମେ ଦୁଇ ଜାତି ।
ଜାତିଏ ଖାଆନ୍ତି ଘାସ,
ଆର ଜାତି
ଘାସ ଖିଆଙ୍କ ମାଂସ ।।
ମାଂସ ଖିଆଙ୍କୁ ଶିକାରୀ ମାରେ
ଚରିଲେ ଜଙ୍ଗଲ ଘାସ ଖିଆ

ଜଙ୍ଗଲ ବଢ଼େ
ଏମିତି ହୋଇ ଚଳୁଥିଲା ।
ମିଶାଇ ଫେଡ଼ି ବଳୁଥିଲା ।।
ଜନ୍ମ ଦେଲାବେଳେ
ବିଧାତା ଆମକୁ ଦେଲା ବଳ,
ରହିବାକୁ ଦେଲା ବଣ ।
ମଣିଷକୁ ସେ ଦେଲା
ବୁଦ୍ଧି ଆଉ ଜ୍ଞାନ ।।



ତାକୁ ପାଇ ସେ ତୋଳିଲା ଘର
ଅଲଗା ହୋଇ ରହିଲା ।
ଆମ ଭିତରୁ ଯିଏ ତା ଲୋଡା
କିଛି କିଛି ମାରି ଖାଇଲା ॥

ଆମେ ଯେଉଁମାନେ ବଣୁଆ
ଯାହା ଅରଛିଲୁ ଖାଇଲୁ ।
ପେଟ ଚାଖଣ୍ଡକ ଭରିବା ପାଇଁ
ଇଆଡ଼େ ସିଆଡ଼େ ଧାଇଁଲୁ ॥

ଫିଙ୍ଗିଲୁ ନାହିଁ, କି ସଞ୍ଚିଲୁ ନାହିଁ ।
ମାରିଲୁ, ଖାଲି,
ଯେତିକି ଲୋଡ଼ା ବଞ୍ଚିବା ପାଇଁ ॥
ସେଇଠି ମଣିଷ,

ପେଟ ପାଇଁ ଯଦି ଜନ୍ତୁ ମାଇଲା
ଦୋଷ ନାଇଁ ମାରୁ ।
ଯେତିକି ଲୋଡ଼ା ଆପଣା ପାଇଁ
ସେତିକି ମାରି ଫେରୁ ॥
ସେ କଥା ସେ କଲା ନାହିଁ
ଖାଦ୍ୟ ଅଖାଦ୍ୟ ବାରିଲା ନାହିଁ
ମନଇଛା ମାରିଲା ।
ଆମେ ଯାହା ଖାଇ ଥାଆନ୍ତୁ
ସେତକ ସିଏ ସାରିଲା ॥
ଆମେ ଫେରେ ଖାଇବୁ କ'ଣ ?
ଅଛି. ବିଲ ନା ବାଡ଼ି ଆମର ?
ତା ଭୂଇଁଲେ ପଶି ଗଲେ ପାଟି କରିଚି
ମାର, ମାର, ମାର ॥

ଫାନ୍ଦି ଜାଲ ବାନ୍ଧି ଦେଇଚି ।
ଛେଚି କେଞ୍ଚ୍ ପ୍ରାଣ ନେଇଚି ।।
ଆମର ତ ଫେର୍ ପିଲା ଅଛନ୍ତି
ଆମେ ତ ଫେର୍ ପାଳିବୁ ?
ତାଙ୍କର ସିନା ତୋଳାଘର ।
ଗଛ ପତର ଘଞ୍ଚ ନହେଲେ
ଆମେ କେମିତି ଚଳିବୁ ?
ଆମ ଭିତରୁ ଯେତେ ବଞ୍ଚନ୍ତି
ପତର ଆଉ ଘାସରେ,
ନଟା କଣ୍ଟା ବୁଲୁଥାଆନ୍ତି
ସେଇ ପୂଜାକ ଆଶାରେ,
ସେତକ ସେ ଭାବିଲା ନାହିଁ
ତାକୁ ବି କାଟି ପଦା କଲା ।
କଳେବଳେ ଆମକୁ ସେଠଉ
ଧୀରେ ଧୀରେ ବିଦା କଲା ।।



ଏଇ ମଣିଷର ବୁଦ୍ଧି ଆଉ ଏଇ ତାର ବିଚାର ।
ଆମକୁ ମାରୁଚି ବୋଲି
କଅଣ ଅଜପ ତାର ପ୍ରଚାର ?
ଆମକୁ ମାରି ଫୋଟୋ ନେଇଚି,
ଫୁଟ ପକାଇ ମାପ ନେଇଚି,
ଛପି ଛପିକା ମାରି ଦେଇ
ବାହାଦୁର ବୋଲି କହି ହେଇଚି ।।

ମୋତେ ଆସିଥିଲେ ଦେଖିବାକୁ
ପାଠୁଆ କେତେ
କହୁଥିଲେ ।
ବାଘ ସିଂହଙ୍କ ବଅଁଶ ଗୁଣ ଗାଉଥିଲେ ।।

''ସିଂହ ଥିଲା ପଶ୍ଚିମେ ରଜା
ବାଘ ଥିଲା ପୂର୍ବର
ସିଏ ସରୁଚି, ଇଏ ସରୁଚି,
କିଏ ରଖୁଚି ଖବର ?''

କହୁଥିଲେ,
''ମଣିଷଗୁଡ଼ା ବୁଝିଲେ ନାହିଁ
ମାରି ଦେଇଗଲେ ପଲ ପଲ ।
ତୁଚ୍ଛାଟାରେ କରି କଳବଲ ।''
ଭାବିଲେ ନାହିଁ, କଅଣ ହେବ ।
ଟିକିଏ ଭୁଲରେ
ଲୋପ ହୋଇଯିବେ ଦୁଇଟା ଜୀବ ।''



ଅନେକ ଜନ୍ତୁ ହେଲେଣି ଲୋପ
ସେମିତି ଆମେ ହୋଇଯିବୁ ।
ଖାଲି ଚିତ୍ରକାରର ଚିତ୍ର ଆଉ ମୂର୍ତ୍ତିରେ
ଯାହା ରହିଯିବୁ ॥
ଆମ ଗୁଣ ହେଲା
ମାରିବାକୁ ଯଦି କେହି ଆସିଲା
ଡରିଲୁ ନାହିଁ
କାହା ଧମକରେ ଥରିଲୁ ନାହିଁ ।
ପଛଆଡ଼େ ଲାଙ୍ଗୁଡ଼ ଢାକି
ପଳାଇବା ଢ଼ଙ୍ଗ ଧରିଲୁ ନାହିଁ ॥
ଏଇ ଗୁଣ ଯେଉଁ ମଣିଷ ନେଲା,
ଦେଶ ଜାତି ପାଇଁ କାମ କଲା,
ମରିବାକୁ ହେଲା ଆଗ ।
ଆମ ଗୁଣ ସେ ନେଇଚି ବୋଲି
ତା ନାଁରେ ଲାଗିଲା ସିଂହ, ବାଘ ॥

ସେଇ ପାଠୁଆ ଦି'ଜଣ କହୁଥିଲେ,
ଶାହ ବୋଲି କିଏ ଜଣେ ଥିଲେ ॥
ବାଘ ପରି ଥିଲା ସାହସ ବୋଲି
ଶେର୍ ପଦବୀ ପାଇଥିଲେ ॥



ରାଣାପ୍ରତାପର
ଥିଲା ସାହସ, ଥିଲା ବଳ
ଭାରତର ସେ ସିଂହ ବୋଲି
କଥା ରହିଚି କାଳ କାଳ ।
ପଞ୍ଜାବ କେଶରୀ କିଏ ହୋଇଚି
ଉତ୍କଳ କେଶରୀ ନାଁ ଗିହିଚି ।

ଯତୀନ ସାଙ୍ଗରେ ଲାଗିଚି ବାଘା ।
ଖେଳିଥିଲା ସିଏ
ଇଂରେଜ ସାଙ୍ଗରେ ପଟେ ଖେଳ ।
ଆଂଶୁ ମୁଖାର୍ଜୀର ନାଁ ରହିଲା
ବଙ୍ଗଳାର ମହାବଳ ॥
ଏମିତି ଆମେ ନାଁ ପଛରେ ରହିଯିବୁ ।
ନହେଲେ ଅଜା ଆଇଙ୍କର ଗପର ହିରୋ
ହୋଇଯିବୁ ॥
ଆଉ କହିବେ,
''ଅଗନା ଅଗନି ବନସ୍ତ,
ତା ଭିତରେ ଥିଲା ଏକ ଜୀବ
ନାଁ ତା'ର ବାଘ ॥
ପଚାରିବେ ପିଲେ,
''କେମିତି ସେ ଦେଖିବାକୁ ?
ସେ କଥା କହ ଆଗ ॥''

ଆଉ କହିବେ,
'' ବିଲେଇ ପରି ଦେଖିବାକୁ, ହେଲେ,
ବିଲେଇ ଠାରୁ ଖୁବ୍ ବଡ଼ ।
ଯାହାକୁ ମାରିବ ଧକ୍କାଟାଏ
ଚୂନା ହୋଇଯିବ ହାଡଗୋଡ଼ ॥

ବନସ୍ତର ସେ ଥିଲା ରଜା ।
ବଣ ଜଙ୍ଗଲର ଯେତେ ଜୀବ
ସବୁ ଥିଲେ ତା ପ୍ରଜା ।।''
''ଥିଲା ?''
ପଚାରିବେ ପିଲେ
ଏବେ କୁଆଡ଼େ ଗଲା ?
କହିବେ ଆଈ, ''ମଣିଷ ଗୁଳିରେ ପ୍ରାଣଦେଲା ।।''
ପଚାରିବେ ପିଲେ, ''ଗଲେ କୁଆଡ଼େ ତା'ର ପିଲା ?''
କହିବେ ଆଈ, ''ତାକୁ ବି ମଣିଷ ମାରିଦେଲା ।
ଏମିତି ମାରି ମାରି ବଂଶ ସାରିଦେଲା ।''
କହିବେ ପିଲେ- ''ଆହା, ଆହା ।''
ପଚାରିବେ- ''କାହିଁକି ମଣିଷ ଏମିତି କଲା ?''
କହିବେ ଆଈ- ''ଖାଲି ନେବେ ବୋଲି ବାଃ ବାଃ ।।''
ଏକଥା ଶୁଣି ପିଲାଏ ଚୁପ୍ ହୋଇଯିବେ ।
କାବ୍‌ବା ହୋଇ ରହିଯିବେ ।।
ଭାବି ଭାବି ପଚାରିବେ,
''ଫେର୍ କଅଣ ସେମିତି ଜୀବ
ବଣରେ ଜନମ ହୋଇଯିବେ ?''
କହିବେ ଆଈ,
''ଏମିତି ଆଉ ପଚାରିବ ନି,
ଯିଏ ମଲେ ସେ କି ଆସିବେ ?
ଏମିତି ପ୍ରଶ୍ନ ଶୁଣିଲେ ଖାଲି
ଦାଣ୍ଡର ଲୋକେ ହସିବେ ।।''
''ସେମିତି ପଶୁଙ୍କ ଭିତରେ'', କହିବେ ଆଈ
''ସବୁଠୁ ବଡ଼
ଥିଲା ଆଉରି ଏକ ।
ଡେଙ୍ଗା ତ ଡେଙ୍ଗା, ଏତେ ମୋଟା ଯେ
ଦିଶୁ ନଥିଲା ତା ବେକ ।।
ସବୁଠୁ ହେଲା ବିଚିତ୍ର କଥା
ମୁଣ୍ଡଠାରୁ ଗୋଡ଼ଯାଏ ଲମ୍ବିଥିଲା ତା ନାକ ।
ସେଇ ତା ନାକ ସେଇ ତା ହାତ ।।''

ପଚାରିବେ ପିଲେ
"ପଶୁର ହାତ ? କହୁଚ ସତ ?"
କହିବେ ଆଈ,ହଁ ହାତର କାମ ସେଥିରେ କଲା
ହାତୀ ବୋଲି ତା'ର ନା ଥିଲା ।
ପଚାରିବେ ପିଲେ, କୁଆଡ଼େ ଗଲା ?
କହିବେ ଆଈ, ତାକୁ ବି ମଣିଷ ମାରିଦେଲା
ଆଉ କହିବେ, "ଜାଣରେ ପିଲେ ?
କେତେ ଜୀବଜନ୍ତୁ ବଣରେ ଥିଲେ ।
କାହାର ଦାନ୍ତ, କାହାର ବାଳ
କାହାର ପିତ୍ତ କାହାର ଛାଲ ।
ଲୋଭରେ ମଣିଷ କଳବଳ
କରି ମାରିଦେଲା ପଲପଲ ।।"



କହିଗଲି ତ ଇଆଡୁ ସିଆଡୁ ବୁହେ,
ଏବେ ମୋ କଥା ଟିକିଏ କହେ ।
ମୋ ବାପ ଆଉ ମା ।
ଚାରି ଦିନ ଉପାସ ରହି ଦିନେ କହିଲେ, "ନା,
ପିଲାଙ୍କର ପ୍ରାଣ ଯିବ
କଅଣ ଏବେ କରାହେବ ?
ଗାଆଁ ଆଡ଼େ ଚାଲିଯିବା
ଯଦି କିଛି ମିଳି ଯିବ ।"
ଗଲେ । ଗାଈ ଗୋରୁ ଦଳେ
ଧାଡ଼ି ଧରି ଫେରୁଥିଲେ ଗାଆଁକୁ ।
ବେଶ୍ । ଧକ୍କା ମାରି ତାକୁ କଲେ ଶେଷ ।।



ଆଣିଲେ ।
ଗାଁ ବାଲା ଏ କଥା ଜାଣିଲେ ।
ଦିନେ ବାନ୍ଧିଲେ ଗୋଟାଏ ଛେଳି
ରାତିରେ ସେଇଟା ଛାଡ଼ି ବୋବାଳି
କାନ୍ଦିଲା ।
ବାପ ଆମର ବୁଝିଲା ନାଇଁ
ଯେମିତି ଯାଇଚି ଧରିବାକୁ
ଜଣେ କିଏ ବାଣ ବିନ୍ଧିଲା ॥
ବାପ ଆଉ ଫେରିଲା ନାଇଁ,
ମା' କିନ୍ତୁ ଡରିଲା ନାଇଁ ॥

ଦିନେ ଶୁଣିଲୁ,
କେତେବେଳେ ଯାଇ ଶୁଝି ଦେଇ ସେ ଆସିଚି
ଚାରିଆଡ଼େ ଚହଳ ହେଲା--ମଣିଷଖିଆ ମାତିଚି ॥
ଦିନେ କହିଲା ଆମ ମା,
"ନାଇଁରେ ପିଲାଏ ନା,
ଏଠି ଆଉ ରହିବା ନାହିଁ
ବଡ଼ ଜଙ୍ଗଲକୁ ଯିବା ଭାରି ।
ମଣିଷ ଗୁଡ଼ାକ କଲେଣି ପାଞ୍ଚ
ଦିନେ ନା ଦିନେ ଦେବେ ମାରି ॥"

ଚାଲିଗଲୁ ନଈ ଡେ଼ଇଁ
ବଡ଼ ଜଙ୍ଗଲରେ ରହିଲୁ ।
ସେଠି ସେମିତି
ଭୋକ ଉପାସ ସହିଲୁ ॥
ଚାରିଦିନ ଖୋଜି ଖୋଜି
ଦିନଟାଏ ପାଇ ଖାଇଲୁ ॥
ଯିଏ ଯାହା ବାଟରେ ଯାଉଁ
ପାଇଲେ ଭଲ ନହେଲେ ନାଇଁ
ଦିନୁଁ ଦିନ ହେଲା କଷ୍ଟ
ଆମର ପେଟ ଭରିବା ପାଇଁ ॥

ଦିନେ ଦେଖିଲୁ ଆସିନି ମା ।
ଖୋଜିଲୁ ।
ଆଉ ସିଏ ଫେରିବ ନାହିଁ
ଲୋକଙ୍କ କଥାରୁ ବୁଝିଲୁ ॥
କଥା କଅଣ କି ଦିନେ,
ମା' ବୁଲୁଥିଲା ବଣେ ।
ଖାଇବାକୁ ସେ ଖୋଜୁଥିଲା
ପାଣି ବିନା ତଣ୍ଟି ଶୁଖୁଥିଲା ॥
ଦେଖିଲା ପାଚିରି ଘେରିଚି ।
ଭିତରେ ତା'ର ଝର ଝର ପାଣି ଝରୁଚି ॥



ମାରିଲା ଏକ କୁଦା
ପାଣିରେ ଦେହ ଓଦା ।
ପିଇ ପାଣି ବାଟ ଖୋଜିଲା ।
ଘେର ଭିତରେ ପଡ଼ି ଯାଇଚି
ଜାଣି-ବୁଦ୍ଧି ତା'ର ହଜିଲା ॥



ଆଉ ଆମ ମା' ଆସିଲାନି
ଖୋଜିଲୁ ବହୁତ, ଦିଶିଲାନି
ହଉ, ଯେଉଁଠି ହେଲେ ଥାଉ ।
ସେଇଟା ବି ଗୋଟେ ଯନ୍ତା କେଉଁଠି
ବହୁତ ବାଘ ରହନ୍ତି ସେଠି ।
ଆମେ କେମିତି ଜାଣି ଥାଆନ୍ତୁ ?
ଆସି କହିଲା କାଉ ॥

ଆଉ ଦିନେ,
ଭଉଣୀର ମୋର ଥାଉ ବଣେ ।
ଯେ ଯାହା ବାଟରେ ବୁଲୁଥାଉଁ
କଷ୍ଟେ ମଷ୍ଟେ ଗୋଟାଏ ଅଧେ
ଶିକାର କେଉଁଠି ପାଇ ଯାଉଁ ॥
ଦିନେ ଦେଖିଲି
ଭଉଣୀ ମୋର ଫେରିଲାନି
ମନଟା ମୋଅର ମାନିଲାନି ।
ଗଲା କୁଆଡ଼େ ?
କିଏ ଆଉ ତାକୁ ମାରି ଦେଲା କି ?
ଶିକାର ପଛରେ ଯାଉ ଯାଉ
ବହୁତ ଦୂରକୁ ଚାଲି ଗଲା କି ?
ନାଁ ପଡ଼ିଗଲା କାହିଁ ଘେରରେ ?
ନାଁ ଭାସିଗଲା କାହିଁ ସୋଅରେ ?
ଅତାଡ଼ି ତଳକୁ ଖସି ଗଲା କି ?
କାଦୁଅ ପଙ୍କରେ ପଶି ଗଲା କି ?
ନାଁ ଅଜଗର ତାକୁ ଗିଳି ଦେଲା ?
କି ଗାତ ଭିତରକୁ ଗଳି ଗଲା ?
ହେଲି ଖୋଜି ଖୋଜି ହାଲିଆ
ଶୁଣିଲି କେଉଁଠି
ପକାଇ ଜାଲ
ଧରି ନେଇଗଲେ ଜାଲିଆ ॥



ଛୋଟିଆ ଗୋଟାଏ
ଯନ୍ତା କରି
ତାକୁ ତା'ଭିତରେ
ଦେଇ ଭରି
ହାଟ ବଜାରରେ
ଦେଖାଉଛନ୍ତି ।
ଧନ ପାଇଁ ହାତ
ପତଉଛନ୍ତି ॥

କାଉ ଆସି ଦେଲା ଖବର ।
ଶୁଣି ମୋର ଛାତିରେ ଧକ୍‌କା ଲାଗିଲା ଜବର ।
କହି ପାରୁନି ମୁଁ--ଯାହା ଲାଗିଲା ମନଟା
ପିତା ଲାଗିଲା ବଣଟା ।
ଭାବିଲି
"ଏ ମଣିଷ ଗୁଡ଼ାକ ହୋଇ ଯାଇଛନ୍ତି
ଏକାବେଳେକେ ନଷ୍ଟ ।
ବୁଝିପାରନ୍ତି ନି
ଅନ୍ୟକୁ ବି ହୁଏ କଷ୍ଟ ?"

ବାକିଥିଲି ମୁଁ ।
କଷ୍ଟରେ କାଳ କାଟୁଥିଲି ।
ଭୋକରେ ଶୋଷରେ ଓଠଖାଲି ଚାଟୁଥିଲି ।।
ଦେଖିଲି,
ଧୀର ଧୀର କରି ଇଆଡ଼େ ମଣିଷ ଆଇଲା ।
ଛପି ଛପି କରି କେତେ ଜୀବଜନ୍ତୁ ମାଇଲା ।।
ପତର ନେଲା,
ଘାସ ନେଲା,
ଜଙ୍ଗଲ କାଟି ଚାଷ କଲା ।
ଏକଥା ସବୁ ସହି ସହି ମନରେ ମୋର
ରୋଷ ହେଲା ।
ମୁଁ ଧୀରେ ଧୀରେ ବଡ଼ ହେଲି ।
ବାଘୁଣୀ ନେଇ ଘର କଲି ।
ଆମର ବି ହେଲେ ପିଲାପିଲି ।।
ମାଡ଼ି ମାଡ଼ି ଏଣେ ଆସୁଚି ମଣିଷ
କଅଣ କରିବି ଭାଳି ହେଲି ।।
ଦିନେ ଯାଇଥିଲି ଶିକାର ପାଇଁ
ଘର ଜଗିଥିଲା ବାଘୁଣୀ ।।
ଘରକୁ ଫେରି ଦେଖିଲି ନାହିଁ କାହାକୁ ।।
ନା ପିଲାଙ୍କୁ ନା ମାଆକୁ ।।
ମନରେ ହେଲା ଭାଳେଣି ।।

ବାଇଆ ଭଳି ଖୋଜିଲି,
ରାଗରେ ଦୁଃଖରେ ଗର୍ଜିଲି ।
ବୁଝିପାରିଲିନି, କେଉଁ ଦୋଷେ ଏହା ଅର୍ଜିଲି ॥
ଶୁଣିଲି ବାଘୁଣୀକି କିଏ ମାରିଚି ।
ସଉକରେ ନେଇ ପିଲା ଦୁଇଟିକୁ ପାଳିଚି ॥
କହିଲି, ମଣିଷକୁ ମୁଁ ଦେଖିବି ।
ଶିଖାଇବି ତାକୁ ମୁଁ କିଛି, ନହେଲେ କିଛି ଶିଖିବି ॥



ଦିନେ ଦେଖିଲି ମଣିଷ,
ତା ହାତରେ ଥିଲା ନଳି ଟେ ।
ଯେମିତି ହେଲୁ ମୁହାଁମୁହିଁ
ଫୁଟାଇ ଦେଲା ଗୁଳିଟେ ॥
ହାତ ତାର ପରା ଥରିଗଲା,
ଲାଗୁଚି ସିଏ ଡରିଗଲା ॥
ଗୁଳି ଗଲା ଚାଲି କୁଆଡ଼େ
ମୁଁ କି ତାକୁ ଏଥର ଛାଡ଼େ ?
ମାରିଦେଲି ଧକାଏ,
ସେତିକିରେ ସେ ମରିଗଲା ।
ସେଇଦିନୁ ପାଲଟି ଗଲି ମୁଁ ମଣିଷ-ମରା ॥
ଯେତେ ଯାହାକଲେ ନ ପଡ଼େ ଧରା ॥
ବାଘ ମାତିଚି,ବାଘ ମାତିଚି
ଚାରିଆଡ଼େ ହୁରି ହେଲା
ଯିଏ ଶୁଣିଲା ଥରିଗଲା ॥
ହଉ ହଉ ସଞ୍ଜ ରାସ୍ତାଘାଟ ପଡ଼ିଗଲା ।
ମିଛରେ ସତରେ ବହୁତ କଥା
ଧୂର ଦୂରକୁ ଚରିଗଲା ।
ଯାହାର ଖାଇଲି ମଣିଷ,ଗାଈ
ଛାତି ମୁଣ୍ଡ ପିଟି ସିଏ କହିଲା,
"ଆହା,ମୋର ସବୁ ସରିଗଲା ॥

ମୋ ମୁଣ୍ଡପାଇଁ
ଯାଚିଲା ଧନ ମଣିଷ ।
ମାରି ଯେ ଆଣିବ ଦିଆଯିବ ତାକୁ ତିନିଶ ॥
ଧରି ଆଣି ଦେଲେ ହଜାରେ,
ଜାଲ ବସାଇ ଜଗିଲେ ଶିକାରୀ
ମୁଁ ବୁଲିଲି ମଜାରେ ॥



ଆଉରି ମଣିଷ,
ଆଉରି ଗୋରୁ
ମାଇଲି ॥
କାଉ, ଶାଗୁଣା,
ବିଲୁଆ ଗଧିଆ
ମାନଙ୍କୁ ଖୁଆଇ
ଖାଇଲି ॥
କହିଥିଲି ମୁଁ,
ମଣିଷକୁ ଦିନେ
ଶିଖାଇବି ବୋଲି,
ଲାଗୁଚି ଶିଖାଇ ପାଇଲି ॥
ଏଇମିତି ଦିନ ବିତିଗଲା ।
ବୁଝିଗଲି ମୁଁ,
ମଣିଷଟା କେଡ଼େ ଛାତିବାଲା ।
କେତେ ଦିନ ଆଉ ଯାଇଥାଆନ୍ତା ?
ମୋ ପାଇଁ ବି ଥିଲା ଗୋଟାଏ ଯନ୍ତା ॥
ଯେଉଁଦିନ ମୁଁ ଧରାହେଲି
ଆଇଲେ ଲୋକ ଧାଡ଼ିଧରି ।
ହଜାର ହଜାର ହେଲେ ହାଜର
ଗାଡ଼ି, ମଟର, ରେଳ ଚଢ଼ି ।'
ଯନ୍ତା ଭିତରେ ମୁଁ ଶୋଇଥିଲି ।
କେମିତ ପଡ଼ିଲି ଇଆ ଭିତରେ
ମନେ ମନେ ଖାଲି ଭାବୁଥିଲି ॥
ଲୋକଙ୍କର ଭିଡ଼ ବଢୁଥିଲା ।
ମୁଁ ଏଣେ ପଡ଼ିଚି ଯନ୍ତା ଭିତରେ ,
ତେବେକେ ଡ଼ରରେ



ଲୋକଙ୍କର ଛାତି ଉଠୁଥିଲା ଆଉ ପଡୁଥିଲା ।।
କିଏ କହୁଥାଏ
ମାରିଦିଅ ତାକୁ ଗୁଳିରେ ।
କିଏ କହୁଥାଏ
ଚଢ଼େଇ ଦିଅ ଶୂଳୀରେ ।।
କିଏ କହୁଥାଏ
ଚିର ତା ପେଟ, ଦେଖିବା କେତେ
ମଣିଷ ଅଛି ଗିଳିରେ ।।
ମଣିଷର ଫେର୍ ଚେତା ହେଲା ।
କିଏ ଜଣେ ତାଙ୍କ ନେତା ଥିଲା
ସିଏ କହିଲା,
"ମାରନାହିଁ ମାରନାହିଁ
ଦେଶର ଅମୂଲ୍ୟ ଧନ ଇଏ
ଗୋଟାଏ ଗୁଳିରେ ସାର ନାହିଁ ।।"
ମରିବାକୁ ମୋର ଡର ନଥିଲା
ମରି ଥାଆନ୍ତି ।
ହେଲେ,
କପାଳେ ତ ଲେଖା ସଢ଼ିବାକୁ ,
ଫେର୍ କେମିତି ମରି ଥାଆନ୍ତି ?
ମୋତେ ଆଣି ଏବେ ରଖିଚି ମଣିଷ
ବଡ଼ ଯନ୍ତାରେ ।
ଦିନ ରାତି ମୋର କରୁଚି ସେବା
ଅତି ଯତ୍ନରେ ।।
ସବୁ ଥାଇ ମୋର
ସବୁ ଶୂନ୍ୟ ।
କାହିକି ଜାଣ ?
ଯା'ର ନାହିଁ ମୁକ୍ତି ଅଛି କଅଣ ?

ପଡ଼ି ପଡ଼ି ମୁଁ ଯନ୍ତା ଭିତରେ
ଭାବଇ ମନେ ।
ଖୋଲି ଯାଆନ୍ତାନି ଦୁଆର ଗୋଟା
କେମିତି ଦିନେ ॥
ବାହାରି ଯାଆନ୍ତି ବୁଲନ୍ତି ମୁଁ ଯାଇ
ସେଇ ବଣରେ.?
ସଢ଼ିବାକୁ ଲେଖା ହୋଇଚି କପାଳେ
ଏଇ କଣରେ ॥
ମୋତେ ଦେଖିବାକୁ ଆସନ୍ତି
ବହୁତ ଲୋକ ।
ପିଲା ବୁଢ଼ା, ବଡ଼ ସାନ,
କିଏ ପଣ୍ଡିତ କେ ମୂର୍ଖ ॥
ଆସିଲେ ପଣ୍ଡିତ
ଜାଣି ପାରଇ ମୁହିଁ ।
ମୋତେ ଦେଖିକରି
ହୁଅନ୍ତି ବହୁତ କଥା ସେ କୁହାକୋହି ॥
ପଢ଼ଇ ତାଙ୍କର ଜଙ୍ଗଲ କଥା
ଆକାଶ ସମୁଦ୍ର ଭୂଗୋଳ କଥା,
ମଣିଷ ଜାତିର ମଙ୍ଗଳ କଥା,
ବଳବାନ ଆଉ ଦୁର୍ବଳ କଥା ॥
ତାଙ୍କ କଥାରୁ ବୁଝିଲି ଯାହା
ତହିଁରୁ କାଟି ଛାଟି
ପୁନେଇଁ ଦିନ ବସିଲି ଲେଖି
ତୁମକୁ ଏଇ ଚିଠି ॥
ଯେଉଁ ଦିନ ଅମାସିଆ
ସରିଲା ଚିଠି, ସକାଳୁ ଆସି ଡ଼ାକିଲା କାଉ କା
ଜାଣିଥିଲି ଏବେ ବିଲୁଆ ହୋଇଚି ରଜା ।
କହିଲି କାଉକୁ, "ଭାଇଟା ପରା,
ଚିଠି ତୁ ଦେଇ ଆ ଯା ।"
ଏଥର କଥା ଶୁଣ ।
ରହିବ ନାହିଁ ଚାଖଣ୍ଡେ ହେଲେ ବଣ ॥
ତୁମେ ଯେତେ ସବୁ ଜଙ୍ଗଲ ଜୀବ,
ଦେଖିବାକୁ ସପନ ହେବ ।
ମଣିଷ କିଛି ରଖିବ ନାଇଁ,
ବସି ଯିବ ଖାଇ ପିଇ ॥

ବଣରେ ଆଉ ରହିବ ନାହିଁ ଗଛ ।
ମଣିଷ ସବୁ କରିବ ମୂଳପୋଛ ॥

ମଣିଷ ଯେଉଁ ନିଶ୍ୱାସ ନିଏ
ଅମ୍ଳଜାନ ସେଥିରେ ଥାଏ
ତାକୁ ତିଆରେ ଗଛ ।
ମଣିଷର ପ୍ରଶ୍ୱାସ-ବାୟୁ ସିଏ କରଇ ସ୍ୱଚ୍ଛ ।
ଗଲେ ଗଛ
ପବନ ସବୁ ବିଷାକ୍ତ ହେବ ।
ବେମାରି ଯେତେ ବଢ଼ିବ ।
ନୂଆ ନୂଆ ଧରିବ ରୋଗ
ମଣିଷ ଆୟୁ ଛିଡ଼ିବ ॥
ମଣିଷ ତ ଜଙ୍ଗଲ ଯାକ ଦେଲାଣି ପଦା କରି
ଔଷଦ ଗଛ ଗଲେଣି ।
ଯେଉଁ କେଇଟା ରହିଚି ବାକି
ସେ ସବୁ ହେବ ଜାଳେଣି ॥

ଔଷଦ ତା'ର ଥିଲା ବଣରେ
ଖୋଜି ଲୋଡ଼ି ସେ ଆଣୁଥିଲା ।
କାହାର ଫୁଲ କାହାର ଫଳ
କାହାର ଚେର କାହାର ଛାଲ
କାମରେ ତା'ର ଲାଗୁଥିଲା ॥
ଗଲେ ଗଛ
ବରଷା ଆଉ ହେବ ନାହିଁ ବେଳରେ ।
ଜଙ୍ଗଲର ଧୋଅଳା ଧରି
ଆସିବ ନାହିଁ ନାଳରେ ॥
ନହେଲେ ହେବ ଅତି ବରଷା
ନଈରେ ବଢ଼ି ଆସିବ ।
ଜଙ୍ଗଲର ଘାସ,ବୁଦା,ବଣ
ଆଗୁଳନ୍ତି କେତେ ପାଣି ଜାଣ ?
ଆଗୁଳିବାକୁ ତ ନଥିବେ ସିଏ
ମଣିଷର ଘରଦୁଆର ଭାସିବ ॥
ଗଛର ଚେର ଆଗୁଳେ ମାଟି,
ଦଉଚି ମଣିଷ ଗଛ କାଟି ॥
ଆସିବ ମାଟି ଧୋଇ ହୋଇ
ପୋତି ହୋଇବ ନଈ ।
ପାହାଡ଼ ପର୍ବତ ଠାକରା ହେବ
ତୁମେ ରହିବ କାହିଁ ?

ସମସ୍ତଙ୍କ ବଂଶ ମାରି
ମଣିଷ ସଂଖ୍ୟା ଯିବ ବଢ଼ି ॥
କଅଣ ହେବ କହି ହେଉନି,
ଆଉ ଦୂରକୁ ଆଖି ପାଉନି ॥
ଏ ସବୁ କରି ନଷ୍ଟ,
ମଣିଷର ବଞ୍ଚିବା ହେବ କଷ୍ଟ ॥
ଶେଷକୁ, ଅତି ବୁଦ୍ଧିଆ ହୋଇ
ମଣିଷକୁ କିଛି ଦିଶିଲା ନାହିଁ ?
ନିଜକୁ ନିଜେ ମାରିବ ବୋଲି
ବସି ହଉଚି ସଜ ।
ତା'ରି ଦୋଷରୁ ମରୁଚୁ ଆମେ
ସେ ବି ରହିବନି ମର୍ତ୍ତ୍ୟ ଧାମେ ।
ତାକୁ ଦେବ ଚାପି ତାଆରି ପାପର ବୋଝ ॥
ଥାଉ । ଯାହା ହେଉଚି ହେଉ ।
ରହିଲି, ସମସ୍ତଙ୍କର ମଙ୍ଗଳ ହେବ
ଏତିକି କଥା କହିଲି ॥
ଚିଠି ପଢ଼ା ସରିଗଲା ।
ବାଘ କଥା ଶୁଣି
ଆଖିରୁ କା ଲୁହ ଗଡ଼ିଗଲା ॥
ବିଲୁଆ ରଜା ହରଷ ।
କହିଲା ଶୁଣି ଠିକ୍ ଠିକ୍
ଲେଖିଚି ଚିଠି ସରସ ॥
ହୁକା ହୁକା ହୁଆ
ଯା ଘରକୁ ଯିଏ ଯାଆ ॥





